( ଗୋପାଳଚନ୍ଦ୍ର ସାଏଙ୍କ ରଚିତ )

# କୃଷକ ଗୀତ ।

( ଏଥିରେ ରାମ ଜନ୍ମ, ରାବଣ ମରଣ,
। କୃଷ୍ଣ ଜନ୍ମ, କଂସ ମରଣ
କ ଠାରୁ କ୍ଷ ପର୍ଯ୍ୟନ୍ତ ଲେଖା ହୋଇଅଛି । )



କବିଙ୍କ ଅନୁମତି କ୍ରମେ
ଶ୍ରୀ ଲକ୍ଷ୍ମୀକାନ୍ତ ଦତ୍ତ ଓଟେରଙ୍କ ଦ୍ୱାରା
ଦ୍ୱିତୀୟବାର ପ୍ରକାଶିତ ।

ଅରୁଣୋଦୟ ପ୍ରେସରେ
ପ୍ରିଣ୍ଟର, ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ୧ମବାର ମୁଦ୍ରିତ ।

ପ୍ରାପ୍ତିସ୍ଥାନ—ଅରୁଣୋଦୟ ପୁସ୍ତକାଳୟ ।
ବାଲୁବଜାର ପୋଃ ଅଃ ଗୃନ୍ଦକାଗୌକ କଟକ ।
୧୯୩୩

ମୂଲ୍ୟ ୵୦ / ଏକଅଣା ମାତ୍ର ।

# କୃଷ୍ଣଙ୍କ ଗୀତ ।

## ରାମଜନ୍ମ ଓ ରାବଣ ମରଣ ।

କହୁଅଛୁ ସୀତାମ୍ରୁଣ ରାମଙ୍କ ଚରିତ ।
କର୍ଣ୍ଣରେ ଶୁଣି ସୁଜନେ ହୋଇବ ମୁକତ ।
କର କୃପାବାରେ ହେ ରଘୁନାଥ ଫେଡ଼ ମୋର ଆରତ ।
ଖଳ ରାବଣ ଜନ୍ମିଲା ଏମର୍ତ୍ତ୍ୟ ଭୁବନ ।
ଖଣ୍ଡେପଣେ ଋଷିକନ୍ୟା କରଇ ହରଣ ।
ଖଟୁଛନ୍ତି ନିତ ତା ପାଦେ ବ୍ରହ୍ମା ଈଶ୍ୱର ଦେବଗଣ । ୨ ।
ଗୁରୁତର ପାପଭାର ନ ସହି ବାସୁକୀ ।
ଗୁହାରି କରିବ ଯାଇ ଧାତାଙ୍କ କତିକି ।
ଗଲାକ୍ଷଣି ଦେଖେ ଆସିଅଛନ୍ତି ସ୍ୱର୍ଗ ଦେବ ଯେତକ । ୩ ।
ଘେନି ସମସ୍ତଙ୍କୁ ସଙ୍ଗେ ନେଲେ କୁଶଧାରୀ ।
ଘେନ ଆମ୍ଭର ବିନତି ବାରେ ଦଇତ୍ୟାରି ।
ଘୁଞ୍ଚିଯିବ ତୁମ୍ଭ ଦୁଃଖ କହିଲେ କ୍ଷୀରସିନ୍ଧୁ ବିହାରୀ । ୪ ।
ନନ୍ଦନ ହୋଇବି ଯାଇ ଦଶରଥଙ୍କର ।
ନାଶିବି ନିଶ୍ଚୟେ ମୁହିଁ ଦୁଷ୍ଟ ଲଙ୍କେଶ୍ୱର ।
ନମି ତାଙ୍କପାଦେ ସର୍ବେ ଚଳିଲେ ନିଜ ନିଜଙ୍କ ପୁର । ୫ ।
ଚରୁଗୋଟି ପୁତ୍ରପାଇ ରାଜା ଦଶରଥ ।
ଚଞ୍ଚଳେ ଉତ୍ସବ କଲେ ହୋଇ ଆନନ୍ଦିତ ।
ଚିନ୍ତା ଦୂରକଲେ ରାଣୀ କୌଶଲ୍ୟା ରାମଙ୍କୁ କରି ଜାତ । ୬ ।
ଛୁର କୈକେୟୀଙ୍କ ଗର୍ଭୁ ଭରତ ହେଲେ ଜନ୍ମ ।
ଛଟକେ ଆସନ୍ତି ଦେଖି ପୁରବାସି ଜନ ।
ଶ୍ରେଷ୍ଠ ସଉମିତ୍ରି ରାଣୀଙ୍କପୁତ୍ର ଲକ୍ଷ୍ମଣ ଶତ୍ରୁଘନ । ୭ ।

ଯତ ବଶ୍ବାମିତ୍ର ରାମଚନ୍ଦ୍ର ପାଶେ ଗଲେ ।
ଯାଇ ଯାଗରକ୍ଷା ରାମ ତାଡ଼କା ମାଇଲେ ।
ଯାଆନ୍ତେ ମିଥିଲା ସେପାଦ ବାଜ ଅହଲ୍ୟା ମୁକ୍ତ ହେଲେ । ୮ ।
ଝଟ୍ଟତ ରାମ ସୀତାଙ୍କୁ ବଭା ହେଲେ ଯାଇ ।
ଝଗଡ଼ା କରନ୍ତେ ପଥେ ପର୍ଶୁରାମଙ୍କୁ ହରାଇ ।
ଝଟ୍ଟ ଝଟ୍ଟ ରାମ ସୀତା ଲକ୍ଷ୍ମଣ ଗମିଲେ ସଙ୍ଗ ହୋଇ । ୯ ।
ନଜପୁରେ ଜନଜଣ ହୋଇଲେ ପ୍ରବେଶ ।
ନଜପୁତ୍ର ରାଜାହେବ କରଲେ ମାନସ ।
ନଷ୍ଠୁର କୈକେୟୀ ବର ମାଗିଲେ ଯାଇ ରାଜାଙ୍କ ପାଶ ।୧୦।
ଟିକଏ କୈକେୟି ଚତ୍ତେ ନ କଲୁ ଭାବନା ।
ଟୋକା ପୁଅର କେମନ୍ତେ କରୁ ଏ କାମନା ।
ଟେକ ତୁ କରଲୁ ନୃପ କହନ୍ତ ମରବ ପ୍ରାଣ ବନା । ୧୧ ।
ଠକବନ୍ଧ ଦାରୁଣ ତୁ କ କଲୁରେ ପୁଣି ।
ଠଣସୁନ୍ଦର କାନନେ କରବ ରହୁଣି ।
ଠିକ ହେଲାବୋଲି ପିତାଚରଣେ ପଡ଼ିଲେ ରଘୁମଣି । ୧୨ ।
ଡ଼ାକଲେ ରାମ ସୀତାଙ୍କୁ ମୁଁ ଯାଉଛି ବନ ।
ଡ଼ୁଇଁହୋଇ ଭାଷେ ସୀତା ଯିବ ପ୍ରାଣଧନ ।
ଡଗ ଡଗ ହୋଇ ଘରୁ ଗମିଲେ ରାମ ସୀତା ଲକ୍ଷ୍ମଣ । ୧୩ ।
ଢୌକନ କରଲେ ବେଗେ ଚତ୍ରକୂଟ ପାଖ ।
ଢ଼ଳ ଢ଼ଳ ହୋଇ ନୃପ ମନେ ହୁଏ ଦୁଃଖ ।
ଛାଡଲା ପରାଣ ଦଶରଥଙ୍କ ନ ଦେଖି ରାମ ମୁଖ । ୧୪ ।
ଅଇଲେ ମାତୁଳ ଘରୁ ଭରତ ଅଯୋଧ୍ୟାକୁ ।
ଅତ ଶୀଘ୍ରେ ଗମିଲେ ସେ ତାଙ୍କୁ ଆଣିବାକୁ ।
ଅନେକ ବୁଝାଇ ରାମ କହିଲେ ନଅତୁ ପାଦୁକାକୁ । ୧୫ ।

ତାହାଙ୍କ ପାଦୁକା ଆଣି ଆସିଲେ ଆଳୟ ।
ତାକୁ ସିଂହାସନେ ଥୋଇ ଭଜେ ଯତକାୟ ।
ତହୁଁ ଙ୍କଛଦନ ରହ ଚଳଲେ ଅଯୋଧା ନରସ୍ୟ । ୧୬ ।
ଥକାହୋଇ ପ୍ରବେଶିଲେ ପଞ୍ଚବଟୀ କତ ।
ଥୟହୋଇ କଛଦନ ରହୁବା ସୌମିତ୍ରି ।
ଥାଇ ତହୁଁ ଖଟଣ୍ଡ କୁଟିରେ ବାସ କରଲେ ସୀତାପତ । ୧୭ ।
ଦନେ ସୂର୍ପଣଖା ବନେ କରେ ପର୍ଯ୍ୟଟନ ।
ଦୈବଯୋଗେ ରାମ ପାଖେ ମିଳଲ୍ଲ ବହନ ।
ଦଇତୁଣୀ ମନ ଜାଣି ଲକ୍ଷ୍ମଣ କାଟିଲେ ନାସାକର୍ଣ୍ଣ । ୧୮ ।
ଧୈର୍ଯ୍ୟ ନ ଧର କହଲ୍ଲ ଭ୍ରାତର ସ୍ମମୁରେ ।
ଧରବୁ ମାୟାର ମୃଗ ରୂପ ତୁ ସତ୍ୱରେ ।
ଧର କରେ ଶର ବନେ ଡ଼ାକବୁ ରଖ ଲକ୍ଷ୍ମଣ ବାରେ । ୧୯ ।
ନେହେ ସୀତା ଦେଖି ମୃଗ ପ୍ରଭୁ ମାରଆଣ ।
ନାରଚ ବନ୍ଧନ୍ତେ ଡ଼ାକେ ରଖ ହେ ଲକ୍ଷ୍ମଣ ।
ନାନା କଟୁବାକ୍ୟ ସୀତା କହନ୍ତେ ଗଲେ ସେ ରାମସ୍ଥାନ । ୨୦ ।
ପ୍ରବେଶିଲା ସୀତାପାଖେ ଯୋଗୀ ବଂଶଆଙ୍ଖି ।
ପଣନ୍ତ ଧର ନଅନ୍ତେ କାନ୍ଦଲେ କମଳାକ୍ଷୀ ।
ପାସୋରବ ନାହିଁ ବାର୍ତ୍ତା କହବ ମୋର ନାଥଙ୍କୁ ପକ୍ଷୀ । ୨୧ ।
ଫେରଆସି ନ ଦେଖିଲେ ସୀତାଙ୍କୁ କୁଟୀର ।
ଫୁଟିରକ୍ତ ବହୁଅଛ ଦେଖିଲେ ପକ୍ଷୀର ।
ଫେଡ଼ିକହେ ରାମଆଗେ ତୁମ୍ଭର ସ୍ତ୍ରୀ ନେଲା ଲଙ୍କେଶ୍ୱର । ୨୨ ।
ବେଢ଼ାଇ ଅଶୋକ ବନେ ରଖିଲା ରାକ୍ଷସ ।
ବୁଝାଇ କହେ ରାବଣ ମନକର ତୋଷ ।
ବାକ୍ୟ ହେଉ ସତ୍ୟ ଯେବେ ମୁଁ ସଙ୍ଗ ମାରନ୍ତୁ ରଘୁଶିଷ୍ୟ ।୨୩।
ଭ୍ରମି ଭମି ଭ୍ରାତବେନ ହନୁପାଖେ ମିଳ ।

ଭସ୍ମେ ସେ କହିଲେ କାହିଁ ଆସ ତପସ୍ୱିର ।
ଭୂପତିଙ୍କ ପୁତ୍ର ଅଟୁଁ ହେ ଆମ୍ଭ ବାସ ଅଯୋଧ୍ୟାପୁରୀ । ୨୪ ।
ମଇତ୍ର ହେଲେ ଶ୍ରୀରାମ ସୁଗ୍ରୀବର ସଙ୍ଗେ ।
ମନଦୁଃଖ ଜଣାଇଲେ ତାହାଙ୍କର ଆଗେ ।
ମାରିବ ନିଷ୍ଟସ୍ୱେ ତୁମ୍ଭ ଶତ୍ରୁକୁ ଶରର ଅଗ୍ରଭାଗେ । ୨୫ ।
ଯୁଦ୍ଧକଲେ ଯାଇ ବାଳି ସଙ୍ଗେ ରଘୁରାଣ ।
ଜିଣି ନ ପାରି ତାହାଙ୍କ ହସ୍ତେଗଲା ପ୍ରାଣ ।
ଯୁବରାଜ କଲେ ସେ ଅଙ୍ଗଦକୁ ସୁଗ୍ରୀ କଲେ ରାଜନ । ୨୬ ।
ରାମଚନ୍ଦ୍ର କହୁଛନ୍ତି ଶୁଣ ମିତ୍ରବର ।
ରମଣୀ ବାର୍ତ୍ତା ପାଇବା କେମନ୍ତ ପ୍ରକାର ।
ରହିବ ଜୀବନ ନାହିଁ ନିଷ୍ଟସ୍ୱ ନ ଦେଖି ସୀତା ମୋର । ୨୭ ।
ଲୋଟି ରାମପାଦେ ସୁଗ୍ରୀ କହେ ଯୋଡ଼ହସ୍ତ ।
ଲଙ୍କାକୁ ପେଷିବି ବେଗେ ବୀର ହନୁମନ୍ତ ।
ଲଙ୍ଘି ତୁ ସମୁଦ୍ର ବେଗେ ଲଙ୍କାରୁ ଆଣ ସୀତା ବୃତ୍ତାନ୍ତ । ୨୮ ।
ବଛାଇ ହନୁ ହସ୍ତରେ ଦେଲେ ରତ୍ନମୁଦ୍ର ।
ବହନେ ଗଲା ସେ ଲଙ୍କା ଡେଇଁଣ ଜଳଧି ।
ବ୍ରହ୍ମଗୃହ ବେଢେ ଖୋଜ ନ ପାଇ ହେଲା ତା ବଣା ବୁଦ୍ଧି ॥
ସବ ଶେଷରେ ଅଶୋକ ବନେ ପ୍ରବେଶିଲା ।
ଶ୍ରୀରାମ ନାମ କହନ୍ତେ ସୀତାଙ୍କୁ ଶୁଭିଲା ।
ସେହି ଶବ୍ଦ ଶୁଣି ଊର୍ଦ୍ଧ୍ୱେ ଦେଖନ୍ତେ ସେ ବୃକ୍ଷୁ ଓହ୍ଲାଇଲା ॥
ସୀତାଙ୍କୁ ମୁଦ୍ରଦେଇ ସେ ନେଲା ମଥାମଣି ।
ସଙ୍କେତ ଦେଖି ହରଷ ହେଲେ ରଘୁମଣି ।
ସଙ୍ଗେ ବାନରଙ୍କୁ ଘେନି ଚଳିଲେ ସୁଗ୍ରୀବ ନୃପମଣି । ୩୧ ।
ସମୁଦ୍ର ଡେଇଁ ରହିଲେ ସୁବଳଯା ତିର ।

ସମରେ ମାଇଲେ ରାମ ସବଂଶ ତାହାର ।
ଶ୍ରୀରାମଙ୍କ କାଣ୍ଡେ ମଲା ରାବଣ ଗଲା ସେ ସ୍ୱର୍ଗପୁରୀ । ୩୨ ।
ହେଲେ ଲଙ୍କେଶ୍ୱର ତାର ଭ୍ରାତା ବିଭୀଷଣ ।
ହନୁ ଯାଅରେ ଜାନକୀ ମେ  ଛାମୁକୁ ଆଣ ।
ହୁତାଶନେ ସୀତା ଦେଲେ ପରୀକ୍ଷା ସଙ୍ଗେ ନେଲେ ଆପଣ ॥
କ୍ଷିତିଧର ହେଲେ ରାମ ଆସି ଅଯୋଧ୍ୟାରେ ।
କ୍ଷିତିରୁ ଉଦ୍ଧର ରାମ କରି କୃପାବାରେ ।
କ୍ଷଣେ ତୁମ୍ଭ ନାମ ଭାବେ ଗୋପାଳ ଚନ୍ଦ୍ର ସାଏ ହୃଦରେ ।



# କୃଷ୍ଣଜନ୍ମ ଓ କଂସ ମରଣ ।

କମଳାର ପ୍ରାଣନାଥ ରାଜୀବଲୋଚନ ।
କରଯୋଡ଼ି ତବପାଦେ ନମେ  ଅନୁକ୍ଷଣ ।
କରୁଣାସାଗରେ ବସି ଭାବୁଛି ରଖ ହେ ନାରାୟଣ । ୧ ।
ଖଳଦୁଷ୍ଟ କଂସାସୁର ମଧ୍ୟେ ହେଲା ଜାତ ।
ଖଟୁଅଛୁ ସବଦେବ ତା ପାଦେ ନିରତ ।
ଖଣ୍ଡ ଆମ୍ଭ ଦୁଃଖ ହେ ଜଗନ୍ନାଥ କରତାକୁ ନିହତ । ୨ ।
ଗୁହାରି କରନ୍ତି ଦେବେ ଯୋଡ଼ି ହସ୍ତ ଦୁଇ ।
ଗୁରୁତର କଷ୍ଟ ଫେଡ ଦେବ ଭବଗ୍ରାହୀ ।
ଗଲାପ୍ରାଣ ବୋଲି ଜଣାଉଛୁଁ ତୋ କର୍ଣ୍ଣେ ଶୁଭୁନାହିଁ । ୩ ।
ଘନାଘନ ଶବ୍ଦଶୁଭେ ଦେବଙ୍କର ସ୍ତୁତି ।
ଘେନ ଲକ୍ଷ୍ମୀ ସଙ୍ଗତରେ ଗଲେ  ଦେବ କତି ।
ଘଡ଼ିଏ ମଉନ ହୋଇ କହିଲେ ଶୁଣ ମୋର ଭାରତୀ । ୪ ।
ନନ୍ଦନ ହୋଇବି ଯାଇ ବସୁଦେବଙ୍କର ।

ନନ୍ଦ ଗୃହରେ ବଢ଼ିବ ରହି ଗୋପପୁର ।
ନ ପାଇବ ଦୁଃଖ କରିବ ଏହା କହିଲେ ଚକ୍ରଧର । ୫ ।
ଚଳିଲେ ତାଙ୍କୁ ମେଲାଣି ମାଗି ଦେବବୃନ୍ଦ ।
ଚଳିଲେ ସମସ୍ତ ତାଙ୍କ କେ କହି ଆନନ୍ଦ ।
ଚନ୍ଦ୍ରାହୁର ହେଲା ଦୟା କରିଲେ ପ୍ରଭୁ ପରମାନନ୍ଦ । ୬ ।
ଛନ୍ଦରେ ଜନମ ହୋଇ ଦେବକୀ ନନ୍ଦନ ।
ଛାର ବସୁଦେବ ଭାବେ ରଖେଁ କେଉଁସ୍ଥାନ ।
ଛାଡ଼ଦେବ ଯାଇ ପୁଅକୁ ମୋର ଗୋପପୁର ଭବନ । ୭ ।
ଜଗନ୍ମୋହନକୁ ନେଇ ଅଛି ବସୁଦେବ ।
ଜାଣିଲେ ପ୍ରହରି ତାକୁ ଅବଶ୍ୟ ଦଣ୍ଡିବ ।
ଜଗ ଉଗ୍ରସେନ ବସିଛି ପଥେ ଆହିଲେ ଧରି ପଡ଼ିବ । ୮ ।
ଝଂଟିତ ସମସ୍ତେ ତାଙ୍କୁ ଦେଖିଲା ପ୍ରହରି ।
ଝିଙ୍ଗାସି ବଚନ ଭାଷେ କିବା ନେଇ ଚୋରି ।
ଝଗଡ଼ା ନ ହେଉ ନିଜ ରୂପକୁ ଦେଖାଇଲେ ଶ୍ରୀହରି । ୯ ।
ନିଶାକାଳେ ପୁଅ ଛାଡ଼ ନନ୍ଦର ଆଳୟ ।
ନିସ୍ତାର ବିପଦୁ ମୋତେ ପ୍ରଭୁ ଦେବାୟ ।
ନୟନେ ମୋତେ ନ ଦେଖନ୍ତୁ ନର କୁଅ ବାରେ ସହାୟ ॥
ଟାଣପଣ କଂସର ଯେ ନ ଗଲାଟି କେବେ ।
ଟଳପଡ଼ବ ଦୁହିଙ୍କ ଜୀବଘୋଟି ଏବେ ।
ଟୋପର ଦେଇଛି ନେଇ ନ ଦଶେ ଅନ୍ଧ ଅଛୁ ଏ ଭବେ ॥
ଠଣସୁନ୍ଦର ଶ୍ରୀଧର ନୁହେ ତୁମ୍ଭ ବୈରି ।
ଠାବେ ଠାବେ ସବଘଟେ ଅଛ ତୁମ୍ଭେ ପୂରି ।
ଠକାଠକକର ନାହିଁ ଶ୍ରୀବାସ ଫିଟୁ ମୋର ଶାଙ୍କୋଳୀ ॥
ଡାକେ ବଂଶୀ ଅସ ଅସ ରାଧାଠାକୁରାଣୀ ।

ଡର ଡାକୁ ମୋର ତନୁ କ୍ଷୀଣ ହୋଇଲାଣି ।
ଡାକୁଛି ବଜାଇ ବଂଶୀ ମୋ ନାମେ ଅପନନ୍ଦା କଲାଣି । ୧୩ ।
ଢାଳେ ଯାଇ ତାଙ୍କ ପାଦ ତଳରେ ପଡ଼ିବ ।
ଢମପଣ କଲେ ମୋର ପ୍ରାଣ ହରିଇବ ।
ଢାଳେ ହେଳାକଲେ ଲଜ୍ଜା ହୋଇବ ଯାଇ ତାଙ୍କୁ କହିବ ॥
ଅନାଥ ଜନର ନାଥ ଅଟନ୍ତି ଶ୍ରୀଧର ।
ଅନେକ ବିନୟ ହେବ ଧେନବେ ମୋ ଗିର ।
ଅସ୍ୱୀକାର ବାକ୍ୟ ନ କହ ଚରଣେ ଶପଥ କର ମୋର । ୧୪ ।
ତତକ୍ଷଣ ଯମୁନାକୁ ଗଲେ ନୀର ନେଇ ।
ତେରଛ ଗ୍ରୀବାଣି ମୁଖ ଦେଲେ ସେ ଅନାଇ ।
ତନୁବ୍ୟଥା ହେଲା ଯେବେ ନ କହେଁ ଜାଣିବେ କି କହ୍ନାଇ ॥
ଥର ଥର କରଯୋଡ କହୁଛନ୍ତି ବାଣୀ ।
ଥଣ୍ଡକର ମୋର ଚିତ୍ତ ଦୁଃଖୀଧନମଣି ।
ଥୋଇସଙ୍ଗଅଛ କୃପାର ବାର ଢାଳ ମୋ ଅଙ୍ଗେ ପୁଣି ॥
ଦୟାନାହିଁ ତୋର ଚିତ୍ତେ କହନ୍ତି ଶ୍ରୀପତି ।
ଦୟିନ କରୁଛି ବାରେ ଶୁଣ ଗୋ ଶ୍ରୀମତି ।
ଦୟା କର ଏବେ ରଖ ଜୀବନ ଧେନ ତୁ ମୋ ବିନତି ।୧୮।
ଧର ତୁମ୍ଭ ବେଣୀକର କହେଁ ପ୍ରାଣନାଥ ।
ଧରଲେ ମୋହର ଦୋଷ ହୋଇବ ଅନାଥ ।
ଧର୍ମକୁ ବିଚାର ତୁମ୍ଭେ ସତ୍ୟ ନ ଲଙ୍ଘ ହେ ଜଗନ୍ନାଥ ।୧୯।
ନୀପମୂଳରେ ରହିଲେ ପ୍ରଭୁ ଜଗଜ୍ଜୀବନ ।
ନୀର ନେବାକୁ ଯେ ରାଧା ଗଲେ ନୀରପାଶ ।
ନଂତ୍ସେ ପରଶ ହରିଇବି ସେ ବୋଲନ୍ତି ପୀତବାସ । ୨୦ ।
ପ୍ରାଣନାଥ ମୋର ଅଟ ତୁମ୍ଭେ ଦେବସ୍ୱଭ ।

## କୃଷ୍ଣଙ୍କ ଗୀତ ।

ପାଶୋରଲେ ତୁମ୍ଭ କଥା ହୋଇବ କି ନ୍ୟାଯ୍ୟ ।
ପାଞ୍ଚଘଡ଼ି ରାଜ ହୋଇଲା ବେଳ ଯିବ ମୋର ଆଳସ୍ୟ ।୧୧।
ଫୁଲ୍ ଶେଯ ଶଯାଇଲେ ବିଛଣା ଉପରେ ।
ଫେଡ଼ିବେ ମୋ ମନ ବ୍ୟଥା ଆସି ନନ୍ଦବାଳେ ।
ଫୁଟିଲାଣି ନେତ୍ର ନ ଦେଖି ତାଙ୍କୁ ପ୍ରାଣଯିବ ମୋରରେ ।୧୨।
ବସି ବସି ମହାଚିନ୍ତା କରୁଛନ୍ତି ରାଈ ।
ବାଛୁରୀ ଚରାଇ ବନେ ବ୍ୟଥା ଥିବ ହୋଇ ।
ବିଳମ୍ବ ଘଟିଛି ଆସିଲେ ନାହିଁ ଶ୍ରୀବତ୍ସ ଯଦୁସାଇଁ । ୧୩ ।
ଭ୍ରମର ଜାତି ପୁରୁଷ ଦେଲେ ମୋତେ ଆଶ ।
ଭଲକଥା ଗୋଟି ତାଙ୍କୁ ନୋଇଲା ବିଶ୍ୱାସ ।
ଭାଳୁଛନ୍ତି ରାଧା ଅଥୟ ହୋଇ ନୋହିଲେ ପ୍ରାଣଈଶ । ୧୪ ।

ମଦନମୋହନ ରାଧା ମନ ବଡବାକୁ ।
ମୁଁ ଆସିଲି ବୋଲି ହସ୍ତ ଦେଲେ କବାଟକୁ ।
ମନସ୍କାମ ପୂର୍ଣ୍ଣ କରି ଶ୍ରୀହରି ଗଲେ ନିଜ ପୁରକୁ । ୧୫ ।
ଯୋଗିଜନମାନଙ୍କୁ ଯା ନାମ ଅଗୋଚର ।
ଯାର ଅନ୍ତ ନ ପାଇଲେ ହର ବେଦବର ।
ଯଦୁପତି ନାମ ଅଟେ ବୋଲି ମୁଁ ନ ଜାଣେ ନାସ୍ତି ଛୁର ॥
ରାମକୃଷ୍ଣ ବେନିଭାଇ ଥିଲେ ଗୋପପୁରେ ।
ରାଜା କଂସାସୁର ଧନୁ ଯଜ୍ଞ ଆରମ୍ଭିଲେ ।
ରଥ ସଙ୍ଗେ ନେଇ ମନ୍ତ୍ରି ଆଣ ଯା ଗୋପୁଁ ବେନି ସୋଦରେ ॥

ଲଙ୍ଘି ନ ପାରି ରାଜାଜ୍ଞା ଗଲା ଅତି ବେଗେ ।
ଲୋଚନେ ଦେଖିଲା ସେହୁ ରାମକୃଷ୍ଣ ଆଗେ ।
ଲୋଟିଲା ସାଷ୍ଟାଙ୍ଗେ ପ୍ରଣାମ ହୋଇ ସେପାଦେ ଭୂମିଭାଗେ ।୧୮।
ବାଲ୍ୟକାଳେ ଅଷ୍ଟମଲ୍ଲ ମାଇଲ କେଶିହା ।

ବନ୍ଧୁ ଅତ୍ୟାଗ୍ରୂର କାର୍ଯ୍ୟ କରେ ଲକ୍ଷ୍ମୀନାଥା ।
ବୁଦ୍ଧିବଶା ହୋଇ ବସିଅଛି ସେ ବଧ ହେ ରଜନାଥା । ୨୯ ।
ଶ୍ରୀକୃଷ୍ଣଠାରେ ଅକ୍ରୂର କହେ ଯୋଡ଼ ହସ୍ତ
ସଙ୍ଗେ ତୁମ୍ଭଙ୍କୁ ନେବାକୁ ପଠାଇଛି ରଥ ।
ଶେଷ ହୋଇଲାଣି କଂସର କାଳ ତୁମ୍ଭ ହସ୍ତେ ନିହତ ।୩୦।
ଶ୍ରୀନିବାସ ବଳରାମ ରଥରେ ବସିଲେ ।
ଶୀଘ୍ର ଶୀଘ୍ର ରଥବାହେ ଗଲେ ମଧୁପୁରେ ।
ଛଦ୍ମାରେ ଭେଟିବୁ ଯାଇଁ ଅକ୍ରୂର ମାମୁଙ୍କର ଛାମୁରେ । ୩୧ ।
ସଙ୍କର୍ଷଣ ସଙ୍ଗେ ହରି ମାରି ମଲ୍ଲଗଣ ।
ସନ୍ନିଧେ ପ୍ରବେଶ ହେଲେ ନନ୍ଦର ନନ୍ଦନ ।
ସ୍ୱଶରୀର ଛାଡ଼ି କଂସ ନରେଶ ଗଲା ସ୍ୱର୍ଗଭୁବନ ।୩୨।
ହରି ହରି ଭାଷ ମୁଖେ ପାପ ହେଉ ଦୂର ।
ହରିନାମେ ମୋର ମନ ଥାଉ ନିରନ୍ତର ।
ସ୍ଥାନବୁଦ୍ଧି ଦାସ ଆରତ ଫେଡ଼ ତୋ ପାଦେ ଲୀନକର ।୩୩।
ଷନ୍ଧାଲି କୃଷ୍ଣଙ୍କ ଗୀତ ହୋଇ ହର୍ଷ ଚିତ୍ତେ ।
ଷଣେ ପାଠ କରି ଭବୁଁ ତର ସୁପଣ୍ଡିତେ ।
ଷମାନିଧି ନାମ ଭବେ ଗୋପାଳ ଚନ୍ଦ୍ରସାଏ ନରତେ ।୩୪।

ସମ୍ପୂର୍ଣ୍ଣ ।



କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ କଟକ ବାଲୁବଜାରସ୍ଥ ଅରୁଣୋଦୟ ପ୍ରେସର
ପୁସ୍ତକାଳୟରେ ପ୍ରାପ୍ତବ୍ୟ



| | |
|---|---|
| ଜଗନ୍ନାଥାମୃତ ଗୀତା | ଟ ॰ ୷ |
| ଧର୍ମପୁରାଣ ବା ଧର୍ମସାଗର | ଟ ॰ ।/ |
| ପ୍ରଭୁସମ୍ମିଳନ | ଟ ॰ ।// |
| ଉତ୍ପାତ ସାଗର | ଟ ॰ |
| ଚଣ୍ଡୀପୁରାଣ ବା ଚଣ୍ଡୀ ଯୁଦ୍ଧ | ଟ ୧ ( |
| ସ୍ୱପ୍ନସିଦ୍ଧି | ଟ ॰ / |
| ଜଗର୍ଣ୍ଣ ମାହାତ୍ମ୍ୟ | ଟ ॰ ।/ |
| ସ୍ୱପ୍ନ ସମାଚାର | ଟ ॰ / |
| ବ୍ରହ୍ମଧର୍ମଗ୍ରନ୍ଥ ଚୌପଦ | ଟ ॰ /୩ |
| ସୌଭାଗ୍ୟପରୀକ୍ଷା | ଟ ॰ / |
| ଗୟାମାହାତ୍ମ୍ୟ | ଟ ॰ // |
| ଷଟ୍ସ୍ଥାଙ୍ଗ ପୁରାଣ | ଟ ॰ // |
| ସଙ୍ଗୀତ ଚନ୍ଦ୍ରଟମଲ | ଟ ॰ /// |
| ସଙ୍ଗୀତ ସରୋଜିନୀ | ଟ ॰ /୬ |
| ଗୋପବିନୋଦ | ଟ ୧୳ |
| ପଞ୍ଚାନନମେଳା ଭଜନ | ଟ ॰ / |
| ଖଣ୍ଡକଥ ହରିବଂଶ | ଟ ୬( |
| ଶ୍ରୁତିନିଷେଧଗୀତା | ଟ ॰ // |
| କାଳିକା ସହସ୍ରନାମ | ଟ ॰ // |
| ଶାଶୁବୋହୂକଳି | ଟ ॰ (୧ |
| ଦୁଇଶଉତୁଣୀକଳି | ଟ ॰ (୬ |
| ହନୂଅଙ୍ଗୁ ନକଳ | ଟ ॰ / |
| ହଂସହଂସୁଲି କଳି | ଟ ॰ /୬ |
| ଅକ୍ରୁରବୋଲି | ଟ ॰ / |
| ଗୁଟଶାଳୀବୋଲି | ଟ ॰ // |
| ଶ୍ରାବଣବାସଦାପିକା ୧ମଖଣ୍ଡ | ଟ ॰ ୷ |
| ଏଜନ ୨ୟ ,, | ଟ ୧୷ |
| ରଘୁପାଦୁକା ଗୀତା | ଟ ॰ ।/ |
| ଶାନ୍ତି ଗୀତା | ଟ ॰ ୳ |
| ବିବାହମେଳକ(ଜ୍ୟୋତିଷ) | ଟ ॰ /// |
| ଅନାଦିସଂହିତା | ଟ ॰ ।// |
| ବନ୍ଦାପନାପଦ୍ଧତି | ଟ ॰ // |
| ଜଶୋରବୋଧଦର୍ଶଣା | ଟ ॰ / |
| ଟୀକା ମହାଭାରତ | ଟ ୬ । |
| ସଙ୍ଗୀତ ସୁଧା | ଟ ॰ । |
| ବାଳବଧ ଗୀତନାଟ୍ୟ | ଟ ॰ /// |
| ମୁଗ୍ଧବୋଧ ଅବଧାନ | ଟ ॰ ।/ |
| ସଙ୍ଗୀତ ଫୁଲହାରସାର | ଟ ॰ /// |
| ରସ ସୁଧାଧି | ଟ ॰ ୳ |
| ପ୍ରହ୍ଲାଦ ନାଟକ | ଟ ॰ ୳// |
| ଜାତକ ଚନ୍ଦ୍ରିକା | ଟ ॰ ।‌ |
| ଧର୍ମକର୍ମ କାରିକା | ଟ ॰ /// |
| ଯାଜ୍ଞବଲ୍କ୍ୟସଂହିତା | ଟ ॰ ୷ |
| ଜଗମଗୀତା ୧ମ | ଟ ।// |
| ଏଜନ ୨ୟ | ଟ ॰ ।/// |
| ସକଳବୋଲି | ॰ / |
| ନଗାସ୍ତୁକୀର୍ତ୍ତନ | ଟ ॰ // |
| ଏଜନ ୨ୟ | ଟ ॰ / |
| ଭଜନ ସାରସଂଗ୍ରହ ୧ମ | ଟ ॰ //୬ |

ପ୍ରିଣ୍ଟର-ଶ୍ରୀ ଉଦୟାନନ୍ଦ ସାହୁ ।